# ଜହ୍ନଧରା ବାଇଆ



ସଂକର୍ଷଣ ସାମଲ

ଜହ୍ନଧରା ବାଇଆ

Janhadhara Bala

ରଚନା
ସଂକର୍ଷଣ ସାମଲ

**Author**
Sankarshan Samal

ପ୍ରକାଶକ
ପ୍ରାଚୀ ପ୍ରକାଶନ
୨୨, ସୂର୍ଯ୍ୟକିରଣ ମାର୍କେଟ
ଶହୀଦ ନଗର
ଭୁବନେଶ୍ୱର ୭୫୧୦୦୭

**Publisher**
PRACHI PRAKASHAN
22, Suryakiran Market
Sahidnagar
Bhubaneswar 751007

ମୁଦ୍ରଣ
ଶୋଭନ
୧୦୬, ଆଗ୍ଚାର୍ଯ୍ୟ ବିହାର,
ଭୁବନେଶ୍ୱର

**Printing**
Shovan,
106, Acharya Bihar,
Bhubaneswar

ପ୍ରଥମ ପ୍ରକାଶ
ନଭେମ୍ବର ୧, ୧୯୯୭

**First published**
November 1, 1997

ମୂଲ୍ୟ ଟ୧୮.୦୦

*Price: Rs.18.00*

# ମୋ କଥା

ଏଇ ବହିର କାହାଣୀଟିକୁ ମୁଁ ମୋ ପିଲାବେଳରୁ ଆଜିଯାଏଁ ମୋ ଭିତରେ ନା ନା ବାଗରେ ଗଢୁଥିଲି । ଭାଙ୍ଗୁଥିଲି । ଗଢୁଥିଲି । ସେ ନେଇ କେତେ ଆନନ୍ଦ, କେତେ ବି ହତାଶା ।

ଲେଖା ପୂର୍ବରୁ ପିଲା ଗହଣକୁ ଏହା ଗପ ଛଳରେ ଯାଇଛି । ସେମାନଙ୍କଠୁଁ ବହୁ ଶ୍ରଦ୍ଧା ବି ପାଇଛି ।

ଯା ହେଉ, ଆଜି ଏହା ବହି ରୂପ ପାଇବାରେ ମୋର ପରମ ଶାନ୍ତି । ଏଥିପାଇଁ ସୃଜନିକାକୁ ମୋର ଆନ୍ତରିକ କୃତଜ୍ଞତା ।

ଜହ୍ନଧରା ବାଇଆ ଚଢେଇଟି ବଞ୍ଚିଥିଲେ ହୁଏତ ଆଜି ସୃଜନିକା ବଗିଚ୍ଛରେ ଆସି ଘର କରିବାକୁ ବେଶୀ ପସନ୍ଦ କରିଥା'ନ୍ତା !

ଲେଖକ

ଏଇଟି
ସେ ଯେଉଁଠି
ଥାଉ ନା କାହିଁକି
ସେଇ **ଜହ୍ନଧରା ବାଇଆକୁ**

ତାଳଗଛଟିଏ। ଏକଦମ୍ ନଈ କୂଳକୁ ଲାଗି। ଗଛଟି ବଙ୍କା। ଠିକ୍ ଗୋଟିଏ ପ୍ରଶ୍ନବାଚକ ଚିହ୍ନ ପରି। ଆକାଶରୁ ସପ୍ତର୍ଷି ମଣ୍ଡଳର ତାରାମାନେ ତାକୁ ଦେଖିଲେ କୁହାକୁହି ହେଉଥିବେ "ଓଃ, ଆମେ ଏଠି ଯୋଉ ବାଗରେ ବସିଛେ ତଳେ ଠିକ୍ ସେଇମିତି ଦେଖ



ଜଣେ ଠିଆ ହୋଇଛି ! ସେ ଗଛଟିର ରୂପ ଯେମିତି କାମ ବି ସେମିତି। ଯାହାକୁ ଦେଖେ ନାନା ପ୍ରଶ୍ନ ପଚ୍ଋରେ। ଏଣୁ ଚଢ଼େଇମାନେ ତାକୁ ଡାକନ୍ତି "କାହିଁକି ଗଛ" ବୋଲି। ବହୁ ଚଢ଼େଇ ତା' ପାଖକୁ ଆସି ତା'ଠୁଁ ନାନା ପ୍ରଶ୍ନ ଶୁଣିବାକୁ ମୋଟେ ଇଚ୍ଛା କରନ୍ତିନାହିଁ। ସେ ପଚ୍ଋରିଥାଏ ଏଇପରି। "ଚଢ଼େଇମାନେ ତମେ କାହିଁକି ଉଡିପାରୁଛ ? ଗୋରୁଗାଈମାନେ କାହିଁକି ପାରୁ ନାହାଁନ୍ତି ? ଏଇ ନଈରେ

ମାଛ କାହିଁକି ପହଁରି ପାରୁଛି ? ଡଙ୍ଗା କାହିଁକି ଭାସୁଛି ? କଇଁଛ କାହିଁକି ଭାସୁଛି ? ପଥର କାହିଁକି ବୁଡି ଯାଉଛି ? ଆକାଶ କାହିଁକି ଏପରି ଦିଶୁଛି ? ଗଛର ପତର ସବୁ ଶାଗୁଆ କାହିଁକି ? ଏଇମିତି କେତେ କ'ଣ।

ଦିନେ ସନ୍ଧ୍ୟା ହୋଇ ଆସୁଥାଏ। ଟିକି ଚଢେଇଟିଏ ଉଡି ଉଡି ଆସି ସେଇ "କାହିଁକି ଗଛ" ଉପରେ ବସିଛି। ମନକୁ ମନ କହିଲା "ଆଜି ରାତିକ ଏଠି ରହିବି।" କୋଉ ପତ୍ର ସନ୍ଧିରେ କେମିତି ରହିବ, ଘୁରି ଆଡକୁ ଗ୍ରୀହଁ ଭାବୁଥାଏ। ହଠାତ୍ ଚମକି ପଡିଲା ସେ। ଗଛ କହୁଛି, "ଟିକି ଚଢେଇ ଭାଇ ! ତମେ ଆଜି ମୋର କୁଣିଆ। ମୋତେ ଭାରି ଖୁସି ଲାଗୁଚି। ଦେଖ ଏଠି ଆଖ ପାଖରେ କେହି ଗଛ ନାହାଁନ୍ତି।



ମୁଁ ଭାରି ଏକୁଟିଆ। ତଳ ନଈର ଢେଉକୁ ଚାହିଁ ଚାହିଁ, ଉପର ଆକାଶକୁ ଚାହିଁ ଚାହିଁ ମୁଁ ମୋ ସମୟ କାଟିଥାଏ। କେବେ କେମିତି ତମରି ଭଳି କିଏ ରାତିଟା ରହିଗଲେ ମତେ ଭାରି ଭଲ ଲାଗେ। ଆଜି ତମକୁ ନିଦ ଲାଗିବା ପର୍ଯ୍ୟନ୍ତ ଗପିବା।'' ଟିକି ଚଢ଼େଇଟି 'ହଁ' ମାରିଲା। ଗଛ ପୁଣି ଚମକି ପଡିଲା ପରି କହିଲା ''ଟିକି ଚଢ଼େଇ ଭାଇ, ଟିକି ଚଢ଼େଇ ଭାଇ, ଦେଖ, ଦେଖତ? ସେଇ ଆଡକୁ ଚାହଁ ଗୋଲ ଜହ୍ନଟା କିପରି ସେଇ ତାଳବଣିଆ ମଝିରୁ ଉଠି ଆସୁଛି। ଆହା, ସେଠିଥିବା ତାଳ ଗଛମାନଙ୍କୁ ତାକୁ ଛୁଇଁ କି ମଜା ଲାଗୁ ନଥିବ? ଟିକି ଚଢ଼େଇ କହିଲା ''କାଇଁ ମୁଁ ତ ସେଇ ତାଳବଣିଆ ଦେଇ ବହୁ ସଞ୍ଜରେ ଯାଇଛି। ଜହ୍ନ ସେଠୁ ବାହାରିବା କେବେ ଦେଖିନାହିଁ।'' ''ନ ଦେଖିଚ ଯଦି ଦେଖ, ତମ ଆଖିକି କ'ଣ ତମେ ବ୍ୟବହାର କରିପାରୁନ!'' ତାଳ ଗଛଟି କହିଲା। ଟିକି ଚଢ଼େଇଟି ସେଇ ଆଡକୁ ଭଲ କରି ଚାହିଁଲା। ଆଖି ମଳିମଳି ଚାହିଁଲା। ''ହଁ, ସତେ ତ!''

ତାଳଗଛଟି ତାକୁ ଅନୁରୋଧ କଲା, ''ତମେ ଏଇ କଥାଟା ତାଙ୍କଠୁଁ ଟିକିଏ ବୁଝନ୍ତ ନାଇଁ? ଜହ୍ନକୁ ଛୁଇଁଲେ କିମିତି ଲାଗେ? ''ହଉ, ରାତି ପାହୁ, ମୁଁ ସେମାନଙ୍କଠୁଁ ବୁଝି ଆସି କହିବି। ମୁଁ ତ ଗୋଟିଏ ଜରୁରୀ କାମରେ

ଯାଉଥିଲି। ଟିକିଏ ଡେରି ହୋଇଗଲେ ଚଳିବ।" ଟିକି ଚଢେଇଟି ଉତ୍ତର ଦେଲା।

ଜହ୍ନ ଧୀରେ ଧୀରେ ଉପରକୁ ଉଠିବାକୁ ଲାଗିଲା। ଚାରିଆଡ ରୁପାର କିରଣରେ ଭରିଗଲା। ଟିକି ଚଢେଇର ବହୁତ ଗପିବାକୁ ଇଚ୍ଛା। ହେଲେ ତାଳ ଗଛ ବେଶୀ ଗପିଲା ନାହିଁ। ମନକୁ ମନ ଖାଲି କହି ହେଉଥାଏ। "ଜହ୍ନ ସେଠି ସେ ବଣିଆ ଭିତରୁ କିମିତି ବାହାରେ ? ତା ଦିହ କେତେ ଶୀତଳ ? ସେ ତାଳ ଗଛମାନଙ୍କୁ ଛୁଇଁ ଦେଲା ବେଳେ ସେମାନଙ୍କୁ ନିଶ୍ଚୟ କୁତୁକୁତୁ ଲାଗୁଥିବ ?

ରାତି ପାହିଲା। ଟିକି ଚଢେଇର ନିଦ ଭାଙ୍ଗିଗଲା। ସେ ଉଡି ଚାଲିଲା ସେଇ ବଣିଆ ଆଡେ।

ଯେଉଁ ତାଳବଣିଆରୁ ଜହ୍ନ ଉଇଁଥିଲା ସେଇଟି ଭାରି ବଢିଆ। ଶହଶହ ତାଳଗଛ ସେଠି ଭାଇ ଭାଇ ପରି ଛିଡା ହୋଇଥା'ନ୍ତି। ଟିକି ଚଢେଇ ସେଠି ପହଁଞ୍ଚିଲା ବେଳକୁ ସେଠାର ଚଢେଇମାନେ ସେମାନଙ୍କର ସକାଳ ଗୀତ ଆରମ୍ଭ କରି ଦେଇଥା'ନ୍ତି। ଟିକି ଚଢେଇଟି ଗୋଟାଏ ତାଳଗଛ ଅଗରେ ବସି ତାକୁ ପଚାରିଲା, "ଭାଇ, ଜହ୍ନ ତମମାନଙ୍କୁ ଛୁଇଁ ଛୁଇଁ କାଲି ସଞ୍ଜବେଳେ ବାହାରିଲା ? ତା ଦିହଟି ତୁମକୁ କିମିତି ଲାଗିଲା ? ଗଛଟି ଠୋ ଠୋ ହସିଲା। ତା ହସ ବହୁତ



ଦୂରକୁ ଶୁଭିଲା । କାରଣ ସେ ଗଛଟା ଖୁବ୍ ମୋଟା ସୋଟା ଥିଲା । ତା ପେଟ ଖୁବ ବଡ ଥିଲା । ତା ହସରେ ବହୁ ଚଢେଇ ଚମକି ପଡିଲେ । ହସ ରୋକି ସେ ଟିକି ଚଢେଇକି କହିଲା, "ଭାଇ ଜହ୍ନଟାକୁ କ'ଣ ନବ କି ?" ଅନ୍ୟ ଗଛମାନେ ପଗ୍ଚରିଲେ "କ'ଣ ? କ'ଣ ?"

ସିଏ ବଡ ପାଟିରେ ସମସ୍ତଙ୍କୁ ଶୁଣାଇ କହିଲା "ଦେଖ ହୋ, ଇଏ ଜହ୍ନ ଧରିବାକୁ ଆସିଛି । କାଲି ରାତିରେ ଜହ୍ନ କୁଆଡେ ଏଇଠି ଥିଲା, ଏଇଠୁ ବାହାରିଲା ।" ସମସ୍ତେ ହସିଲେ, ତା'ର ଏପରି କଥାରେ ଟିକି ଚଢେଇକି ଭାରି ଲାଜ ମାଡିଲା । ସେ କିଛି କହିଲାନାହିଁ । ଗୁମ୍ ମାରି ବସି ରହିଲା । ତା'ର ଏ ଅବସ୍ଥା ଦେଖି ତାଳ ଗଛଟି ମନରେ

ଦୟା ହେଲା। ସେ ତାକୁ ପଚାରିଲା "ହେ ଭାଇ, ଜହ୍ନ ତ ଜହ୍ନ, ସିଏ କୋଉଠି ଥାଏ, କିମିତି ଉଏଁ ?- ତମର ଏଥିରେ ମୁଣ୍ଡ ଖେଳେଇ ଲାଭ କ'ଣ ? ତମେ କେତେ ଦିନ ବା ବଞ୍ଚିବ, ହସ ଖୁସୀ କର। ହେଇ ସେଇ ଚଢେଇମାନଙ୍କ ପରି ଗୀତ ଗାଅ। ଖାଅ ପିଅ। ଅଯଥା କଥାରେ ମୁଣ୍ଡ ପୂରାଅ ନାହିଁ।"

ଟିକି ଚଢେଇ ଅଳି କଲା ଭଳି କହିଲା, "ଭାଇ, ମତେ ଏତିକି ମାତ୍ର କହିଦିଅ ନା ! ମୁଁ ଗୋଟାଏ ଗଛକୁ ଜବାବ ଦେଇଛି ତମଠୁଁ ବୁଝି ତାକୁ କହିବି ବୋଲି।" ଗଛ ପଚାରିଲା, "କୋଉ ଗଛଟି ?" ଟିକି ଚଢେଇ ଗଛଟିର ରୂପ ବର୍ଣ୍ଣନା କରୁ କରୁ ତାଳ ଗଛଟି ଆହୁରି ଜୋରରେ ହସିବାକୁ ଲାଗିଲା। "ଓଃ ସେଇ କାହିଁକି ଗଛ ?" ତା ବିଷୟରେ ଆମେ ବହୁତ ଚଢେଇଙ୍କଠୁଁ ବହୁତ କଥା ଶୁଣିଛୁ। ସିଏ ତ ଏଇମିତି କଥା କହି କହି ଦୁନିଆଟାକୁ ବାଇଆ କରି ଦେବାକୁ ବସିଲାଣି। ସେ ପୁଣି କହିଲା "ଏତିକି ଶୁଣିଯା ତାକୁ କହିବୁ  ଜହ୍ନ ଏଠି ନଥିଲା କି ଏଠୁ କେବେ ଉଏଁ ନାଇଁ। ହେଇ ଯୋଉଁ ମୁଣ୍ଡିଆଟା ନୀଳ ହାତୀ ପରି ଦେଖାଯାଉଛି ତା ସେକଡେ ସେ ଥାଏ। ସେଇଠୁ ସେ ଉଏଁ। ମୁଁ ତାକୁ ସବୁ ପୂନେଇଁ ଦିନ ସେଇଠୁଁ ବାହାରିବାର ଦେଖିଛି।"

ଟିକି ଚଢ଼େଇଟି ସେ ତାଳ ବଣିଆରୁ କିଛି ବାଟ ଉଡି ଆସିଲା କାହିଁକି ଗଛ ଆଡକୁ। ପୁଣି ମନକୁ ମନ ଭାବିଲା ଏତେ ବାଟ ତ ଆସିଲିଣି। ସେଇ ମୁଣ୍ଡିଆ ପାଖରୁ ପୂରା ବୁଲି ଚାଲିଯିବି, ଆଉ ଟିକିଏ କଷ୍ଟ ହବ ତ, ହଉ ଆଉ ଟିକିଏ ଡେରି ହେଲେ ବି ଚଳିବ। ସେ ଫେରି ପୁଣି ତାଳଗଛ ଦେଖାଇ ଦେଇଥିବା ମୁଣ୍ଡିଆ ଆଡକୁ ମୁହାଁଇଲା।

ମୁଣ୍ଡିଆଟା ସିନା ପାଖରେ ଦେଖାଯାଉଥିଲା, ତାହା କିନ୍ତୁ ଥିଲା ବହୁ ଦୂରରେ। ଟିକି ଚଢ଼େଇଟିକୁ ଲାଗିଲା ସେ ତା ଆଡକୁ ଗଲାବେଳେ ମୁଣ୍ଡିଆଟା ଘୁଞ୍ଚି ଘୁଞ୍ଚି ଯାଉଛି। କେତେ ସମୟ ପରେ ସେ ମୁଣ୍ଡିଆ ଉପରେ ନଟୁ ପରି



ଦୂରକୁ ଦିଶୁଥିବା ବରଗଛ ଉପରେ ଯାଇଁ ବସିଲା। ସେ ଜାଗାଟା ତାକୁ ଭାରି ବଢ଼ିଆ ଲାଗିଲା। ଜହ୍ନ ଯେପରି ଶାନ୍ତ ଶିଷ୍ଟ ସୁନ୍ଦର ଏ ଜାଗାଟା ଠିକ୍ ସେଇପରି। ଏଇଠୁଁ ସେ ନିଶ୍ଚୟ ବାହାରୁଥିବ। ସେ ମନକୁ ମନ କହିଲା।

ବରଗଛଟି ପ୍ରଥମେ ତୁଣ୍ଡ ଖୋଲିଲା। "ଟିକି ଚଢ଼େଇ ଭାଇ ଏତେ ସକାଳୁ ତମେ କୁଆଡେ? ଚଢ଼େଇଟି ସବୁ କଥା କହିଲା। ବରଗଛ ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇଲା "ଆମର ସେ ଭାଗ୍ୟ କାହିଁ?" ଜହ୍ନ ଏଠୁ ଉଏଁନା ଟିକି ଭାଇ, ଉଏଁ ହେଇ ସେଇ ଆର ପାହାଡ ପାହାଡ ଶିଖରୁ। ସେଇଠି ସେ ରହୁଥିବ। ଜଙ୍ଗଲ ଭିତରେ ଝରଣା କୂଳରେ। ମୋର ବି ସେଠିକି ଟିକିଏ ଯିବା ପାଇଁ ଇଚ୍ଛା ହେଉଛି। ମୁଁ କ'ଣ ଯାଇ ପାରୁଛି? ଭଗବାନ ଯାହାକୁ ଯିବାର ଶକ୍ତି ଦେଇ ନାହାଁନ୍ତି, ତାକୁ କାହିଁକି ଯିବା ପାଇଁ ଇଚ୍ଛା ଦେଇଛନ୍ତି। ସେ ଏହା କହି ଭାରି ମନ ଦୁଃଖ କଲା। ଟିକି ଚଢ଼େଇ କହିଲା, "ମନ ଦୁଃଖ କରନା। ମୋର ତ ଆଉ କାମକୁ ଯାଇ ହବନି, ଏତେ ଡେରି ହେଲାଣି। ଆଜି ନିଶ୍ଚୟ ସେ ପାହାଡ ପାଖକୁ ଯାଇଁ ବୁଝିବି। ଫେରିଲେ ବେଳକୁ ତମକୁ କହିଯିବି।"

ସେ ପାହାଡ ଆଡେ ଉଡି ଗ୍ଲିଲା। ପାହାଡ ଅଛି ଅଳପ ବାଟ ଘୁ' ଘୁ' ଶୁଭିଲା। ଇଏ କ'ଣରେ। "ଟିକି ଚଢେଇ ଭାବୁ ଭାବୁ ସେଠି ପହଞ୍ଚି ଯାଇଥିଲା। ପାହାଡ ଶିଖରେ ଯାଇଁ ବସି ଦେଖିଲା ଯେ ଏକଡେ ସ୍ଥଳ ଭାଗ ସେ କଡେ ସମୁଦ୍ର। ପାହାଡଟା କିଛି ଅଂଶ ସମୁଦ୍ର ଭିତରକୁ ପଶିଯାଇଛି। ଢେଉ ପରେ ଢେଉ ତା'ଠି ଆସି ପିଟି ହେଉଛନ୍ତି। ଟିକି ଚଢେଇ ତାକୁ କହିଲା "ଭାଇ"।

ପାହାଡ କିଛି ଶୁଣିଲା ନାଇଁ। ପୁଣି ସେ ପଗ୍ଚରିଲା, ପାହାଡ, ଶୁଣିଲା ନାଇଁ। 'କି ଅଜବ କଥା। ଏତେ ପଗ୍ଚରିଲେ ବି ଜଣେ ଶୁଣିବନି !' ଟିକି ଚଢେଇ ଖୁବ୍ ବଡ ପାଟିରେ ଆଉ ଥରେ ପଗ୍ଚରିଲା। ପାହାଡ ଏଥର ଶୁଣିଲା। ଅତି



ନରମ ସ୍ୱରରେ କହିଲା "କଅଣ କହୁଚ।" ଏଡେ ବଡ ଦିହ କଥା ଏତେ କଅଁଳ ! ଟିକି ଚଢେଇକି ଭାରି ମଜା ଲାଗିଲା। କହିଲା "ଭାଇ ତମ ସ୍ୱରରୁ ମୁଁ ଜାଣି ପାରୁଛି ତମେ ଭାରି ଭଲ। ମୁଁ ଏତେ ଥର ଡାକିଲା ପରେ ଶୁଣୁ ନଥିଲ କାହିଁକି ?" କଥା କଅଣ କି ସେ ପାହାଡଟା ପୂରା କାଳା ନଥିଲେ ବି ଅଧା କାଳା ଥିଲା। ସବୁବେଳେ ସମୁଦ୍ର ଗର୍ଜନ ଶୁଣି ଶୁଣି ଏପରି ସେ ହୋଇ ଯାଇଥିଲା।

ପାହାଡ ଖାଲି ହସିଲା। ଅତି ଆଦରରେ କହିଲା "ଭାଇ, କ'ଣ କହୁଛ ?" ଟିକି ଚଢେଇ ସବୁ ଗୋଟି ଗୋଟି କହିଗଲା। ପାହାଡ କହିଲା "ଜହ୍ନ ଏଠି ନଥାଏ। ସେ ଏଇ ସମୁଦ୍ର ଭିତରୁ ଉଏଁ। "ସମୁଦ୍ର ଭିତରୁ ?" ଟିକି ଆଶ୍ଚର୍ଯ୍ୟ ହେଲା, "ହଁ ସମୁଦ୍ର ଭିତରୁ", ପାହାଡ କହିଲା, "ସମୁଦ୍ର



ଭିତରେ ଗୋଟିଏ ଛୋଟ ଟାପୁ ଅଛି । ସେଠୁଁ ବହୁ ଦେଶାନ୍ତରୀ ପକ୍ଷୀ ଶୀତ ଋତୁ ବେଳକୁ ଆମର ଏଠିକି ବୁଲିବାକୁ ଆସିଲା ବେଳେ ପ୍ରଥମେ ସମୁଦ୍ର ଲଘିଂ ମୋ ଉପରେ ବସନ୍ତି । ସେମାନଙ୍କଠୁ ମୁଁ ସେ ଟାପୁ ବିଷୟରେ ଶୁଣିଛି । ସେ ଟାପୁଟା ବହୁ ସୁନ୍ଦର । ସେଠି ବହୁ ସୁନ୍ଦର ରଙ୍ଗ ବେରଙ୍ଗ ପଥରର ଗଦା ମାନ ଅଛି । ସେଠିକା ବାଲି ଠିକ୍ ସୁନା ଭଳି ଚିକ୍ ଚିକ୍ । ସେଠି ସେଇ ବଢ଼ିଆ ଜାଗାରେ ଜହ୍ନ ରହୁଥିବ । ମୁଁ କିନ୍ତୁ ସେ ଚଢ଼େଇମାନଙ୍କୁ ସେ କଥା କେବେ ପଚ୍ଚାରିନାହିଁ । ସେମାନେ ଆସିବା ତ ଆଉ ମୋଟେ ଦି' ମାସ ରହିଲା'' ପାହାଡ ଗଣି ଗଣି କହିଲା, ''ସେମାନେ ଆସିଲେ ପଚ୍ଚାରି ବୁଝିବି ।''



ଟିକି ଚଢ଼େଇ କହିଲା "ନାଁ ମୋର ଏତେ ଆଗ୍ରହ ହେଲାଣି ଯେ ଦି'ମାସ ଅପେକ୍ଷା କରି ହେବନି। ମୁଁ ସେଠିକି ଯିବି, ସବୁ ଦେଖିକି ବୁଝିବି।"

"ତମେ ଯିବ ?" ପାହାଡ଼ ଆଶ୍ଚର୍ଯ୍ୟ ହେଲା, "ତମର ସେ ସାହସ କାଇଁ ? ବଳ କାଇଁ ?" ପାହାଡ଼ ସବୁ କଥା ଭାବି ହୋଇ ପଦକ କହିଲା, "ଯେଉଁମାନେ ସମୁଦ୍ର ପାରି ହୁଅନ୍ତି, ସେମାନେ ଦେଶାନ୍ତରୀ ପକ୍ଷୀ। ବିଧାତା ସେମାନଙ୍କୁ ସେହିପରି କରିଛନ୍ତି। ମୁଁ ଜାଣିଛି ତମେ ଦେଶ ଭିତରେ ଗୋଟିଏ ଜାଗାରୁ ଅନ୍ୟ ଜାଗାକୁ ସ୍ଥାନାନ୍ତର ଗମନ କରିଥାଅ। କିନ୍ତୁ ସମୁଦ୍ର ଟପି ପାରିବ କି ?"

ଟିକି ଚଢ଼େଇକି ପାହାଡ଼ର ଏକଥା କାହିଁକି ଭାରି ବାଧିଲା। ବାଧି ନଥିଲେ ସେ ଚିଚ୍ ଚିଚ୍ କରି ପାଞ୍ଚ ମିନିଟରୁ ବେଶୀ ପାଟି କରି ନଥା'ନ୍ତା। ପାଟି ବନ୍ଦ କରି ବଡ଼ ପାଟିରେ କହିଲା "ମଣିଷକୁ ତ ବିଧାତା ଗଢ଼ି ନାଇଁ ଉଡ଼ିବା ପାଇଁ ! ସେ ତ ଉଡ଼ିପାରୁଛି।" ଚିନ୍ତା କରି ପୁଣି କହିଲା, "ଆମେ ତ ସ୍ଥଳଭାଗ ଉପରେ ଏତେ ବାଟ ଉଡ଼ି ପାରୁଛୁ, ଆଉ ଟିକିଏ ଅଧିକ ସାହସ କରି ସମୁଦ୍ର ଲଙ୍ଘି ନପାରିବୁ କାହିଁକି ? ମୁଁ ଯିବି, ନିଶ୍ଚୟ ଯିବି।" ପାହାଡ଼ ତାକୁ ସାବାସୀ ଦେଲା। "ତମର ଆଗ୍ରହ ଓ ଦୃଢ଼ ମନୋବଳ ଦେଖି ମୁଁ ଜାଣି

ପାରୁଛି ତମେ ପାରିବ, ନିଶ୍ଚୟ ପାରିବ। ହଁ ସାହସ ହେଲା ବଡ। ସେ ଆଗ, ବଳ ପଛ। ଚେଷ୍ଟା କର। କେଇ ଦିନ ଏଠି ରୁହ, ଖାଅ ପିଅ।" "ଏଠି ରହିବି ?" ଟିକି ଚଢେଇ ଆଶ୍ଚର୍ଯ୍ୟ ହେଲା ପରି କହିଲା।

ପାହାଡ କହିଲା, "ହଁ, ବିଶ୍ରାମ। ମୁଁ କହିବାର କଥା କ'ଣ କି ତମେ ଏଠି ୪/୫ ଦିନ ରହି ସମୁଦ୍ର ଉପରେ ଉଡିବା ଅଭ୍ୟାସ କର। ସାହସ ତମର ଆଉ ଟିକିଏ ବଢୁ। ତା'ପରେ ଯାତ୍ରା ଆରମ୍ଭ କରିବ।"

ପାହାଡର କଥା ଟିକି ଚଢେଇର ମନକୁ ବେଶ୍ ପାଇଲା। ସେ ପାହାଡର ଗୋଟାଏ ପାଖ ଅତି ତୀଖ ହୋଇ ସମୁଦ୍ର ପାଖରୁ ଠିଆ ହୋଇଥାଏ। ସେଇଠୁଁ ପ୍ରଥମେ ଟିକି ଚଢେଇଟି ସମୁଦ୍ର ଉପରେ ତା ଉଡା ଅଭ୍ୟାସ ଆରମ୍ଭ କଲା।

ତା'ର ଏହା ପୂରା ନୂଆ ଅନୁଭୂତି। ତାକୁ ଭାରି ଭଲ ଲାଗୁଥାଏ। ସେ ଉଡୁଥାଏ ଆଉ ମନେ ମନେ ଭାବୁଥାଏ ତା' ନିଜ ଜାତି ଭାଇଙ୍କ କଥା। ସେମାନେ ଖାଲି ଜନ୍ମ ହୋଇଛନ୍ତି ଖାଇବା, ପିଇବା ଆଉ ମରିବା ପାଇଁ। ନୂଆ କିଛି କରିବାକୁ ଗଲା ବେଳେ ଯେଉଁ ଆନନ୍ଦ ମିଳେ ସେମାନେ

କାହୁଁ ଜାଣିବେ ? ସେମାନେ ଖାଲି ଅଳସୁଆ ହୋଇ ବଞ୍ଚୁଛନ୍ତି । ଖାଇବା ଜିନିଷ ଖୋଜିବା ଛଡା ଆଉ କିଛି କରୁନାହାଁନ୍ତି । ସେମାନେ ଖାଲି ସବୁ କଥାକୁ ଡରି ଚଳୁଛନ୍ତି । ନିଜ ନିଜ ଭିତରେ କେବଳ ଝଗଡା କରିବା ଜାଣିଛନ୍ତି । ଆଉ କିଛି ଅଧିକା କରିବାରେ ସେମାନଙ୍କର ଆଦୌ ଆଗ୍ରହ ନାହିଁ ।

ଏମିତି ଭାବି ଭାବି ସେ ଖାଲି ଉଡିଲା । ଏମିତିକି ଭୋକ ଶୋଷ ବି ସେ ଭୁଲିଗଲା । ସେ ଯେତେବେଳେ ପାହାଡ ପାଖକୁ ଫେରିଲା ଅନ୍ଧାର ଘୋଟି ଆସିଲାଣି ।

ତା' ପରଦିନ ବି ସେ ସେଇଆ କଲା । ଡେଣା ଘୋଳି ହୋଇଗଲେ କିପରି କିଛି ସମୟ ପବନ ଭିତରେ ସ୍ଥିର ରହିହେବ, ଏଭଳି କେତେକ କଥା ସେ ଅଭ୍ୟାସ



କଲା। ସେଦିନ ସନ୍ଧ୍ୟାବେଳକୁ ବି ସେ ଫେରିଲାନାହିଁ। ରାତିରେ ତାରା ଆଲୁଅରେ କିପରି ଉଡିପାରିବ, ଏଇ ଅଭ୍ୟାସ ସେ କରିବାକୁ ଚାହିଁଲା।

ଏଇମିତି ଚାରିଦିନ ତା'ର ବିତିଗଲା। ସବୁବେଳେ ତାକୁ ଭାରି ଭଲ ଲାଗୁଥାଏ। ସେ ନୂଆ କିଛି କରିବ ବୋଲି, ଆଉ ଯେଉଁଥି ପାଇଁ ବାହାରିଛି ତାହା କରି ପାରିବ ବୋଲି। ଏହା ଭିତରେ କେତେକ ସମୁଦ୍ର ଚିଲ ସହିତ ତା'ର ଭେଟ ହେଲା। ଭେଟରୁ ବନ୍ଧୁତା। ସେମାନେ ତାକୁ ଉଡିବାର କେତେକ କାଇଦା ଶିଖାଇଲେ। ଆଉ ଶିଖାଇଲେ ଗୋଟାଏ ଧୀର ସ୍ୱରରେ ପାଟି କରିବା। ଏମିତି କଲେ ଯେକୌଣସି ସମୁଦ୍ର ଚିଲ ବିପଦ ବେଳେ ଆସି ସାହାଯ୍ୟ କରିବ ବୋଲି ସେମାନେ ତାକୁ କହିଛନ୍ତି। ଆଉ ଦୁଇଦିନ ଶେଷ ହେବା ପରେ ଦିନେ ରାତିରେ ଟିକି ଚଢେଇ ଓ ପାହାଡ କଥାବାର୍ତ୍ତା ହେଲେ। ଟିକି ଚଢେଇ - "ମୁଁ କାଲି ନିଶ୍ଚୟ ଟାପୁକୁ ଯାଉଛି।" ପାହାଡ - "କ'ଣ, ସାହସ ହୋଇଗଲା ତ?" ଟିକି ଚଢେଇ - "ହଁ, ମୋର ଆଉ କୌଣସି ଡର ଭୟ ନାହିଁ।" ପାହାଡ - "କିନ୍ତୁ ଗୋଟାଏ ସମସ୍ୟା ଅଛି। ତାହା ହେଲା ସମୁଦ୍ର ଉପରେ ତମକୁ ଦଶ ପନ୍ଦର ଦିନ ଉଡିବାକୁ ପଡିବ। ଖାଇବ କ'ଣ? ପିଇବ କ'ଣ?"

ଟିକି ଚଢେଇ "ହଁ ସେ ବିଷୟ ବି ମୁଁ ଭାବିଚି।

ଉଡିଲା ବେଳେ ମୁଁ ଦେଖିଛି ବହୁ ଜାହାଜ ଯିବା ଆସିବା କରୁଛନ୍ତି। ସେଇମିତିକା ଗୋଟାଏ ଗୋଟାଏ ଜାହାଜରେ ଓହ୍ଲାଇବି। ଖାଇବା, ପିଇବା ସେଠୁଁ ମିଳିଯିବ। ତା'ପରେ କିଛି ବାଟ ଯିବି। ପୁଣି ଗୋଟାଏ ଜାହାଜରେ ଓହ୍ଲାଇବି।''
ପାହାଡ - ''ବାଃ ଧନ୍ୟ ତମର ବୁଦ୍ଧି। ହଁ ତମକୁ ଆଉ ଗୋଟାଏ ଅସଲ କଥା କହିନାହିଁ। ହେଇ ଦେଖ, ଏଇ ଯେଉଁ ଉଜ୍ଜ୍ୱଳ ତାରା ତାକୁ ସମସ୍ତେ କହନ୍ତି ଧ୍ରୁବତାରା। ସେ ଯେଉଁ ଦିଗରେ ଅଛି ତାହା ଉତ୍ତରଦିଗ। ସେଇଆକୁ ଦେଖି ତୁମକୁ ଦିଗ ବାରି ଉଡି ଉଡି ଯିବାକୁ ପଡିବ।''



ରାତି ପାହି ନଥାଏ। ଯେତେବେଳେ କୁଆଁତାରା ଢେଉ ମଥାନରୁ ଉଠିଲା ଟିକି ଚଢେଇ ତା ଉଡା ଆରମ୍ଭ କଲା। ପାହାଡର ଗଛମାନେ ତାକୁ ବିଦାୟ ଦେବାପାଇଁ ସେତେବେଳକୁ ଉଠି ସାରିଥିଲେ। ସେ ଯେତେବେଳେ ଉଡିବା ଆରମ୍ଭ କଲା ସେମାନେ ସେମାନଙ୍କ ପତର ପାପୁଲିରେ ତାଳି ଦେବାକୁ ଲାଗିଲେ। ହଠାତ୍ ଖଣ୍ଡିଆଭୂତ ଭଳି ପବନ ଝଲକାଏ ବହିଗଲା। ଅଳପ ଅଳପ ପାହାନ୍ତି ଆଲୁଅରେ ଟିକି ଚଢେଇ ଠିକ୍ ଦେଖି ପାରୁଥାଏ ପଞ୍ଝାଏ ଶୁଖିଲା ପତର ତାକୁ ଉତ୍ସାହ ଦେବା ପାଇଁ କିଛିବାଟ ତା' ସାଙ୍ଗରେ ଉଡି ଆସିଲେ।

ନୀଳ ଆକାଶ ନୀଳ ସମୁଦ୍ର ଉପରେ। ଆକାଶରେ ଖଣ୍ଡେ ଖଣ୍ଡେ ବଉଦ ତଳେ ଗୋଟେ ଗୋଟେ ଛୋଟବଡ ଜାହାଜ। ମଝିରେ ଟିକି ଚଢେଇ। ସାମାନ୍ୟ ବିନ୍ଦୁଟି ଭଳି।



ସେ ଉଡି ଚାଲିଲା। ସେ ବୁଲି ଅନେଇଲା କୂଳ ତାଠୁଁ ବହୁ ପଛରେ। ପାହାଡ ଚୂଳ କ୍ରମେ ଆଉ ଦିଶିଲା ନାହିଁ।

ସେ ଉଡି ଚାଲିଲା। ଉଡି ଚାଲିଲା। କେତେ ଉଡିବ? ବେଳେବେଳେ ଓହ୍ଲେଇ କୋଉ ଜାହାଜ ଉପରେ ଟିକେ ବିଶ୍ରାମ ନେଲା। ପୁଣି ଉଡି ଚାଲିଲା। ସେ ଏତେ ହାଲିଆ ହୋଇ ପଡିଲା ଯେ ଆଉ ମୋତେ ପାରିବନାହିଁ ବୋଲି ଭାବିଲା।

କୋଉ ଜାହାଜ ଉପରେ ବସି ସେ ସେଠିକି ଚାଲି ଯାଇଥା'ନ୍ତା। କିନ୍ତୁ ତା'ର ଦୁର୍ଭାଗ୍ୟକୁ କୌଣସି ଜାହାଜ ସେ ଟାପୁ ଆଡକୁ ଯାଉନଥିଲେ। ସେଆଡୁ ବରଂ ସବୁତକ ଫେରୁଥିଲେ।

ଟିକି ଚଢେଇ ଯେଉଁ ଭଳି ଭାବିଥିଲା ତାହା କଲା। ଜାହାଜରୁ ଜାହାଜକୁ ସେ ଗଲା। ତାକୁ ଆଦରରେ ନାବିକମାନେ ଖାଇବାକୁ ପିଇବାକୁ ଦେଲେ।

ଦିନେ ଗୋଟାଏ ଜାହାଜରେ ସେ ବସିଛି ତାକୁ ଭାରି ଭୋକ ଶୋଷ ଲାଗୁଥାଏ। ଶୁଣିଲା - ''ଏଇଟିକୁ ଧରିଲେ ଭଲ ତରକାରୀଟିଏ ହୁଅନ୍ତା।'' ଜଣେ କିଏ କହୁଛି। ''କେଡିକିଟିଏ ଜୀବ। କେତେବା ତରକାରୀ ହବ।'' ଆଉ ଜଣେ ଉତ୍ତର ଦେଲା। ''ଆରେ କେବଳ ମୋର ପେଟେ

ରୁଟି ପାଇଁ କ'ଣ ହେବନି ?'' ଆଗ ଜଣକ କହିଲା ।

ଶୁଣୁଣୁଶୁଣୁ ଟିକି କି ଆଉ ରହେ ? ଫୁର୍... । ପଛକୁ ଖାଲି ଥରେ ଟିକିଏ ଅନେଇ ଦେଇ ପୋଷାକରୁ ଚିହ୍ନିଲା, ଆଗ ଜଣକ ଜାହାଜର କ୍ୟାପ୍‌ଟେନ୍ ଓ ଆରଜଣକ ସାଧାରଣ ନାବିକଟିଏ ।

ଟିକି ଚଢ଼େଇ ଉଡ଼ିଲା । ଜାହାଜ ପ୍ରତି ତାହାର ଆଉ ଶ୍ରଦ୍ଧା ନଥାଏ ।

ଆଉ ଅଳ୍ପ ବାଟ ଅଛି । ହେଇ କୂଳ ଦିଶି ଦିଶି ଯାଉଛି । ଟିକି ପାରିଲା ନାହିଁ — ଖସି... ପ... ଡି... ଲା ।



ସମୁଦ୍ର ଢେଉ ସବୁବେଳେ ଗର୍ଜୁଥା'ନ୍ତି ସବୁ ଖାଇବୁ। ଟିକି ଚଢ଼େଇକି କିନ୍ତୁ ଖାଇଲେନାହିଁ। ସମୁଦ୍ରର ମାଛମାନେ ପାଟି ମେଲେଇ ବୁଲୁଥା'ନ୍ତି ସବୁ ଖାଇବେ ଖାଇବେ। ସେମାନେ ତାକୁ ଛୁଇଁଲେ ନାହିଁ। ବରଂ ଖୁବ୍ ବଡ ଢେଉଟିଏ ସମସ୍ତଙ୍କୁ ଟପେଇ ଘୁଞ୍ଚିଆସି ତାକୁ ସାହାଯ୍ୟ କଲା। ତାକୁ ଉଠେଇ ଗେଲ କଲା। ଭସେଇ ଭସେଇ ନେଇ କୂଳରେ ଲଗେଇ ଦେଲା। ଆଉ ଖୁବ୍ ଗୋଟାଏ ବଡ ପାଟିରେ ଶୁଣେଇ କହିଲା - "ମୁଁ ମୋ କାମ ସାରିଦେଲି, ନିଅ ବଞ୍ଚାଅ।"

ଡେଙ୍ଗା ଡେଙ୍ଗା ଗୋଡ। ଧଳା ଧଳା ପର। ସେମାନେ ସାରସ ପକ୍ଷୀ। ମାଆ ସାରସ ବାପ ସାରସ ତାଙ୍କ ପୁଅ କୁନି ସାରସକୁ ଧରି ସମୁଦ୍ର କୂଳରେ ବୁଲାଉଥା'ନ୍ତି। ଆହାର ଖୋଜିବା ଶିଖାଉଥା'ନ୍ତି। ସେତେବେଳକୁ ସୂର୍ଯ୍ୟ ବୁଡିବା ଉପରେ। ସମୁଦ୍ର ଢେଉର ଏତେ ବଡ ଗର୍ଜ୍ଜନରେ ସେମାନେ ଚମକି ପଡିଲେ। ଆଗକୁ ଅନାଇଁ ଦେଲା ମାତ୍ରେ ବାଲି ଉପରକୁ ଗଡି ଗଡି ଆସି ବଡ ଢେଉଟି ଛାଡି ଦେଇଗଲା ଟିକି ଚଢ଼େଇଟିଏ। କଅଣ ଭାବି ଟିକି ଟିକି କଙ୍କଡା ଘୁରୋଟି ତା' ଘୁରିକଡେ ଠିଆ ହୋଇଛନ୍ତି। କୁନି ସାରସ ପାଟିକରି ଉଠିଲେ ତା ଚିଇଁ ଚିଇଁ ସ୍ୱରରେ - "ବାପା, ବାପା, ବୋଉ, ବୋଉ ହେଇ ହେଇ ଦେଖତ।"

ସେମାନେ ସମସ୍ତେ ଟିକି ଚଢ଼େଇଟି ପାଖକୁ ଗଲେ।

ବାପା-ସାରସ ଦେଖି କହିଲା - "ଏଇଟି ବଞ୍ଚିଛି। ପାଣି ମାଡ ଖାଇ ଚେତା ଗୁଲିଯାଇଛି।" ଏତକ କହିଲା ବେଳେ ତା' ସ୍ୱର ବହୁତ ନରମ ଶୁଭୁଥିଲା।

ମାଆ ସାରସ କହିଲା "ଇଏ ଆମ ରାଇଜ ଚଢେଇ ନୁହେଁ। ଆମେ ଶୀତଋତୁରେ ଯେଉଁ ଦେଶକୁ ଉଡିଯାଉଁ, ସେଠିକା ଚଢେଇ। ମନେ ପଡୁଛି ତ ?" ସେ ବାପା ସାରସ ଆଡେ ଗୁହିଁ ପୁଣି କହିଲା- "ୟା'ରି ପରି ଚଢେଇଟିଏ ଗଲାବେଳେ ଆମର କେତେ ଉପକାର କରିଥିଲା ?"

ବାପା-ସାରସ ଟିକିଏ ଭାବି ହେଲା। କୁନି ତା' ଡେଣା ପିଟି କହିଲା "ହଁ ହଁ"। ମାଆ କହିଲା "ଆରେ ଚଗଲା, ତୁ ତ ସେତେବେଳକୁ ଜନ୍ମ ହୋଇ ନଥିଲୁ, ଏସବୁ କଥା



ଜାଣିଲୁ କିମିତି ?''

ବାପ-ସାରସ ଆଡେ ଚ୍ହିଁ ସେ କଥାଟିକୁ ଲମ୍ବାଇଲା - ''ଆରେ କ'ଣ ଭାବୁଛ ? ତମେ ପୁରୁଷଗୁଡାକ ସବୁ ଶିଘ୍ର ଭୁଲିଯାଅ। ମନେ ପଡୁନି ? ଆମେ ଯାଉଥିଲେ ଚିଲିକାକୁ। ବାଟରେ ଭୋକ ସମ୍ଭାଳି ନପାରି ଗୋଟାଏ ଧାନ ପାଟରେ ଓହ୍ଲେଇଲେ। ଅଳ୍ପ ଅଳ୍ପ ପାଣି ସେଠି ଥିଲା। ଆମେ ମନ ଇଚ୍ଛା ଆହାର ଖାଉଥିଲେ। ଶିକାରୀଟିଏ ବନ୍ଧୁକ ଧରି ଆମକୁ ମାରିବାକୁ ଆସୁଥିଲା। ଆମେ ଜାଣି ନଥିଲେ। ହଠାତ୍ ବନ୍ଧୁକ ଫୁଟିଲା। କିନ୍ତୁ ଆମଠିଁ ବାଜିଲାନି। ଆମେ ଭୟରେ ପାଟିକରି ଉପରକୁ ଉଠିଗଲେ। ଆମ ଦଳଟାଯାକ ବି। ଆମ ଦଳର ମୁଖିଆ ଆମ ପାଖକୁ ଆସି କହିଲେ- ''ଯା'ହଉ ତମେ ରକ୍ଷା ପାଇଗଲ।'' ମୁଁ କହିଲି - ''ହଁ ଭଗବାନ ରକ୍ଷା କରିଦେଲେ''। ସେ କହିଲେ - ''ହଁ, ନିଶ୍ଚୟ, କିନ୍ତୁ ତମ ଜୀବନ ଟିକି ଚଢେଇଟିଏ ରଖିଲା। ଭଗବାନ ତାହାରି ଦ୍ୱାରା ତମକୁ ସାହାଯ୍ୟ କଲେ। ମୁଁ ସବୁ ଦେଖିଛି।''

ଆମେ ଦିହେଁ ପଚ୍ରିଲେ ''କିପରି ?'' ସେ କହି ଚ୍ଲିଲେ, ''ଶିକାରୀଟି ଧାନକ୍ଷେତ ହିଡରୁ ଲୁଚି ଲୁଚି ଆସି ବନ୍ଧୁକ ଟିପିଲା ବେଳକୁ ଟିକି ଚଢେଇଟି ତା ଗୋଡ ପାଖରେ ଘାସ ଭିତରେ ବସିଥିଲା। ଫଡ୍‌କିନା ଉଡିଗଲା। ଚମକି ପଡିଲା ଶିକାରୀ। ତା' ଲକ୍ଷ୍ୟ ଠିକ୍ ରହିଲାନାହିଁ। ତମେ

ବଞ୍ଚିଗଲା।'' ତମେ କହିଲ - ''ଏଁ ଏମିତି କଥା ? ଆଚ୍ଛା ଆମେ ତ ସେ ଉପକାରୀ ଚଢ଼େଇଟିକୁ ଧନ୍ୟବାଦ ଦେଇ ପାରିଲେନି।''

ସେ କହିଲେ - ''ଏବେ ତ ଆଉ ହବନି। ଏ ଦଳକୁ ସେ ବିପଦପୂର୍ଣ୍ଣ ଜାଗାକୁ ଆଉ ଫେରେଇ ହବନି। ଆମେ ଫେରିଲା ବେଳକୁ ମୁଁ ସେଇ ଉପକାରୀ ଚଢ଼େଇକୁ ତମକୁ ଚିହ୍ନେଇ ଦେବି। ଯଦି ସେ ଏଠି ଥାଏ।'' ତା'ପରେ ଆମେ ଫେରିଲା ବେଳକୁ ସେ ଆମକୁ ଏଇ ରଙ୍ଗର ଏଇମିତି ଚଢ଼େଇଟିଏ ଦେଖେଇ ଦେଇଥିଲେ।

ମା-ସାରସ ତୁଚ୍ଛା କଥା ଗପିଲାବାଲୀ ନୁହଁନ୍ତି। ଟିକି ଚଢ଼େଇଟିର ଜୀବନ ଯିବା ଉପରେ। ଏ କଥା ସେ ଭଲ ଭାବରେ ଜାଣନ୍ତି। ତାଙ୍କ ତୁଣ୍ଡ ସିନା ଗପୁଥାଏ। ମୁଣ୍ଡ ଖେଳୁଥାଏ କିମିତି ସେ ବଞ୍ଚିବ। ହାତ କାମ କରିଯାଉଥାଏ। ସେମାନେ ତାକୁ ନେଇ କୂଳର ଶୁଖିଲା ବାଲି ଉପରେ ଶୁଆଇ ଦେଲେ। ଆଉଁସି ଦେଲେ, ତା କାନ ଫୁଙ୍କି ଦେଲେ। ତାଙ୍କ ପୁଅ କୁନି-ସାରସଟି ସେ ଚଢ଼େଇର ମୁହଁକୁ ତା ଟିକି ଡେଣାରେ ଖାଲି ବିଞ୍ଚି ପକାଉଥାଏ।

ଘଡ଼ିଏ ହେପାଜତ ପରେ ଟିକି ଚଢ଼େଇର ଚେତା ଆସିଲା। ସେମାନେ ତାକୁ ଟେକି ଟେକି ତାଙ୍କ ଘରକୁ

ନେଇଗଲେ। କୁନି ସାରସଟି ତାର ସବୁଠୁଁ ନରମ ବିଛଣାଟି ଟିକି ଚଢେଇକି ଶୋଇବାକୁ ଦେଇ ଦେଲା।

ସେଦିନ ରାତିରେ ସେ ଅଞ୍ଚଳର ଯୋଉ ଚଢେଇ ଶୁଣିଲେ ତାକୁ ଦେଖିବାକୁ ଆସିଲେ। ସେମାନେ ସମସ୍ତେ ତାକୁ ପଚ୍ରୁଥାନ୍ତି "ଭାଇ, ତମେ ତ ଆମ ପରି ଦେଶାନ୍ତରୀ ପକ୍ଷୀ ନୁହଁ। ଏମିତି ଦୁଃସାହସ କଲ କାହିଁକି ?"

ଟିକି ଚଢେଇ ସବୁକଥା କହିଗଲା। ଆଉ ପଚ୍ରିଲା, "ଜହ୍ନ କୋଉଠି ଥାଏ ? କିଏ ଦେଖିଛ ?" ସେମାନେ ସମସ୍ତେ ଇଏ ତାକୁ ସିଏ ତାକୁ ପଚରା ପଚରି ହେଲେ। ସମସ୍ତେ ଜହ୍ନ ଉଇଁବା ଦେଖୁଛନ୍ତି, କିନ୍ତୁ ଏ କଥା ତ କାହା ମୁଣ୍ଡକୁ



ଢୁକି ନଥିଲା । ସେମାନେ ସମସ୍ତେ ମିଶି ତାଙ୍କର ବୁଢ଼ା ରାଜା ପାଖକୁ ଗଲେ ।

ସେ ରାଜାଙ୍କର ବିରାଟ ରାଜ ଉଆସ ନଥିଲା । ଟାପୁର ଗୋଟିଏ ଜାଗାରେ ସବୁଠୁଁ ପୁରୁଣା ଓକ୍ ଗଛଟିଏ । ତା'ର ସବୁଠୁଁ ବଡ ଆଉ ପୁରୁଣା କୋରଡରେ ସେ ରହୁଥା'ନ୍ତି । ସେ ବହୁବାର ଦଳପତି ହୋଇ ଟାପୁର ଚଢ଼େଇ ଦଳକୁ ନେଇ ଦେଶାନ୍ତର ଗମନ କରିଛନ୍ତି । ତାଙ୍କର ବହୁତ ସାହସ ଓ ବହୁ ବୁଦ୍ଧି ଥିଲା । ତାଙ୍କୁ ବି ବହୁକଥା ଜଣା । ବୁଢ଼ା ହେଲା ପରେ ସେ ସେଇଠାରେ ରହନ୍ତି । ଚଢ଼େଇମାନେ ତାଙ୍କୁ ରାଜା ବୋଲି ମାନନ୍ତି ଓ ଦରକାର ବେଳେ ତାଙ୍କର ପରାମର୍ଶ ନିଅନ୍ତି ।



ଚଢ଼େଇ ଦଳ ରାଜାଙ୍କୁ ଭେଟି ସବୁ କଥା କହିଲେ। ରାଜା ହଠାତ୍ କହି ଉଠିଲେ "ବାଃ, ବଡ ମଜା କଥା ତ !" ଆମେ ସବୁ ଜହ୍ନ ଉଦୟ ଦେଖୁଛେ। ଏଭଳି କଥାଟିଏ ଆମ ମୁଣ୍ଡକୁ ଢୁକି ନଥିଲା। ମୋର ପ୍ରିୟ ଚଢ଼େଇମାନେ, ତୁମେମାନେ ଯାଇଁ ଦେଖ ଜହ୍ନ କେଉଁଠି ରହେ। ଯିଏ ଠିକ୍ କଥା କହିପାରିବ ତାକୁ ପୁରସ୍କାର ଦିଆଯିବ।"

ହଠାତ୍ ସେ ଗଛ ଡାଳରୁ ଏକ ଅଦ୍ଭୁତ ସ୍ୱରରେ କିଏ ଜଣେ ହସିଲା। ରାଜା ପଚ୍ଚରିଲେ, "କିଏ, କିଏ ତମେ ? ସେଠି ବସି ହସୁଚ କାହିଁକି ? ଏଠିକି ଆସ ?" ବିଚିତ୍ର ଚଢ଼େଇଟିଏ ଉଡି ଆସି ସେମାନଙ୍କ ଭିତରେ ବସିଲା। ସେ ହଂସ ପରି ନଥିଲା କି ସାରସ ପରି ନଥିଲା। କୁଆ ପରି ନଥିଲା କି ଶୁଆ ପରି ନଥିଲା। ଯେତେ ସବୁ ସୁନ୍ଦର ଚଢ଼େଇ ଅଛନ୍ତି ସମସ୍ତଙ୍କ ମିଶା ମିଶି ରଙ୍ଗ ଢଙ୍ଗର ଚଢ଼େଇ ସେ ଥିଲା। ସେ କହିଲା। ତା ଅଦ୍ଭୁତ ସ୍ୱରରେ କହିଲା। ତା ସ୍ୱର କୋଇଲି ପରି ନଥିଲା କି କାକତୁଆ ପରି ନଥିଲା, କି ହଳଦି ବସନ୍ତ ପରି ନଥିଲା। ଯେତେଯେତେ ଭଲ ଗୀତ ବୋଲିଲାବାଲା, ମଣିଷ ପରି କଥାକୁହା ଚଢ଼େଇ ଅଛନ୍ତି ସେମାନଙ୍କର ସ୍ୱର ଓ କଥା ମିଶିଗଲେ ଯେମିତି ହବ ସେମିତି ସେ କହିଲା।

"ଭାଇମାନେ, ଏଠାରୁ ବହୁ ଦୂରରେ ଏକ ଜାଗା

ଅଛି । ମୁଁ ସେଠାକାର ଚଢେଇ । ସେ ଦେଶରେ ଏକ ବିରାଟ 'ତାରାଘର' ଅଛି ।'' ତାରା ଘର ଶବ୍ଦଟି ଶୁଣି ଚଢେଇମାନେ ମୁହଁ ଗ୍ରହାଁ ଗ୍ରହିଁ ହେବାରୁ ସେ କହିଲା, ''ସେ ଘର କ'ଣ ଆପଣମାନେ ଜାଣି ନାହାନ୍ତି ? ମଣିଷ ତା ବୁଦ୍ଧି ଖଟେଇ ନାନା କଥା ଜାଣିବା ପାଇଁ ସବୁବେଳେ ଚେଷ୍ଟା କରୁଛି । ଆକାଶ ବିଷୟରେ ବିଶେଷ ଜ୍ଞାନ ହାସଲ କରିବା ପାଇଁ ସେହି ଘର ପ୍ରତିଷ୍ଠା କରି ନାନା ଯନ୍ତ୍ରପାତି ମାନ ନେଇ ଗବେଷଣା କରୁଛି । ତେବେ ମଣିଷ ଏପରି କାହିଁ କରୁଛି ? ଜହ୍ନ ଉଇଁବା ଆମେ ସବୁଥର ଦେଖୁଛେ କିନ୍ତୁ ସେ କୋଉଠି ଥାଏ କିମିତି ଉଏଁ ଏ ବିଷୟରେ ଆମେ ମୁଣ୍ଡ ଖେଳାଉନା । ଆମର ଟିକି ଚଢେଇଟି ମନରେ ଏ ପ୍ରଶ୍ନଟି ଉଠିଲା । ସେ



ତାକୁ ଜାଣିବା ପାଇଁ ଉଦ୍ୟମ ଆରମ୍ଭ କଲା। ମଣିଷ ମନରେ ଏହିଭଳି ଯେଉଁ କୌତୁହଳ ସବୁ ଉଠୁଛି ତାକୁ ଜାଣିବା ପାଇଁ ସେ ଅହରହ ଉଦ୍ୟମ କରୁଛି। ସେହି ଉଦ୍ୟମ ହିଁ ତାକୁ ଏତେ ବଡ କରି ପାରିଛି। ସେ ଆଜି ସମସ୍ତଙ୍କୁ ଶାସନ କରୁଛି।''

''ହଁ, ମୂଳ କଥାକୁ ମୁଁ ଆସୁଛି ମୁଁ ସେଇ ତାରାଘର ଠଣାରେ ଥାଏ। ସେଠି ବୈଜ୍ଞାନିକମାନଙ୍କ ଗବେଷଣା ବେଳର କଥାବାର୍ତ୍ତାକୁ ମନ ଦେଇ ଶୁଣେ, ତାଙ୍କ କାମକୁ ଦେଖେ। ସେଠି ଗୋଟାଏ ଯନ୍ତ୍ର ଅଛି। ସେ ଯନ୍ତ୍ରରେ ପୃଥିବୀ ଜହ୍ନ ଇତ୍ୟାଦି ଅଛନ୍ତି। ଜହ୍ନ କିମିତି ଉଏଁ ଯନ୍ତ୍ର ଘୂରାଇ ଦେଖାଇ ଦିଆଯାଏ। ଛୋଟ ଛୋଟ ପିଲାମାନେ ତାକୁ ଦେଖି ଭାରି ଖୁସି ହୁଅନ୍ତି। ମୋ ପିଲାମାନଙ୍କୁ ବି ଭାରି ମଜା ଲାଗେ। ମୋର ଛୋଟ ପିଲାମାନେ ଥରେ ମତେ ସେ ଯନ୍ତ୍ର ବିଷୟରେ କହିଲେ। ମୁଁ ଦେଖି ବଡ ଆଶ୍ଚର୍ଯ୍ୟ ହେଲି। ସେଥିରେ ଅଛି ପୃଥିବୀ ଗୋଲ ହୋଇ ପେଣ୍ଡୁଭଳି ଚିଜଟିଏ। ଜହ୍ନ ଠୁଁ ଅଲଗା। ଏଣୁ ଜହ୍ନ ପୃଥିବୀରେ ରୁହେନାହିଁ....।''

ରାଜା ସହିତ ଅନ୍ୟ ଚଢେଇମାନେ ଏକ ସ୍ୱରରେ କହି ଉଠିଲେ ''ସତେ!'', ରାଜା ସେ ଚଢେଇକୁ ନାନା ପ୍ରଶ୍ନ ପଗ୍ଭରିଲେ। ସେ ଆଉ ଅଧିକ କିଛି କହିପାରିଲା ନାହିଁ। ଏତିକି କହିଲା, ''ଆପଣଙ୍କ ଭିତରୁ ଜଣେ ସବୁଠୁଁ ବୁଦ୍ଧିଆ

ଚଢେଇକି ସେଠିକି ପଠାନ୍ତୁ । ସେ ସେଠି ରହି ସବୁ ଶୁଣି ଆପଣମାନଙ୍କୁ କହିବ ।''

ରାଜା କହିଲେ, ''ଆସନ୍ତା କାଲି ବସି ଆମେ ଆମ ଭିତରେ ସବୁଠୁଁ କିଏ ବୁଦ୍ଧିଆ ସେଠୁଁ ଯାଇ ସବୁ ଜାଣି ପାରିବ, ଆମକୁ ଆସି କହି ପାରିବ, ଠିକ୍ କରିବା ?

ସେଠି ବସିଥିବା ଏରା, ହଂସରାଳି ଯେଉଁମାନେ କି ଭାରି ବୁଦ୍ଧିଆ ବୋଲି ନିଜକୁ ଭାବନ୍ତି, ଖୁସି ହୋଇ ଉଠୁଥିଲେ। କାରଣ ସେମାନଙ୍କ ନାଁ ବୋଧେ ସମସ୍ତେ ଉଠେଇବେ। ରାଜା ହଠାତ ପୁଣି ସେ ବିଚିତ୍ର ଚଢେଇକି ଗ୍ରହିଁ କହିଲେ, ''ଭାଇ, ତମେ ଏଠିକି କିମିତି ଆସିଲ, ମୂଳ କଥାଟି, କହିଲ ନାହିଁ।'' ସେ କହିଲା ''ଦୁଃଖ କଥା ସବୁ ଠିକେ ଠିକେ ମୁଁ କହୁଚି।



ଗୋଟାଏ ଜାହାଜରେ ମତେ ଅନ୍ୟ ଦେଶର ଚିଡ଼ିଆଖାନାକୁ ନିଆଯାଉଥିଲା। ଜାହାଜଟି ଦୁର୍ଘଟଣାରେ ପଡ଼ି ବୁଡ଼ିଗଲା। ମୁଁ ଦୈବାତ୍ ବଞ୍ଚି ଯାଇ ଏଠି ଆଶ୍ରୟ ନେଇଚି ! ଯଦି ତମ ଭିତରୁ କିଏ ବାହାରେ ମୁଁ ତାକୁ ସାଙ୍ଗରେ ନେଇ ସେ ଦେଶକୁ ଫେରିଯିବି।''

ସେଠୁଁ ଚଢ଼େଇମାନେ ଯେଝା ଘରକୁ ଫେରିଲେ। ସାରସ ଯୋଡ଼ି ଟିକି ଚଢ଼େଇ ଆଗରେ ସବୁକଥା କହିଲେ।

ସେ ରାତି ପାହିଲା। ସକାଳ ସୂର୍ଯ୍ୟ ହସିହସି ଉଇଁଲେ ଟିକି ଚଢ଼େଇର କିନ୍ତୁ ଆଖି ବୁଜି ବୁଜି ଆସୁଥାଏ। ତାକୁ ବଡ଼ କଷ୍ଟ ଲାଗୁଥାଏ। ସେ ସାରସ ଯୋଡ଼ିକି ଦେଖି କହିଲା, ''ମୁଁ ଆଉ କଥା କହି ପାରୁନାହିଁ। ମୋ ମୁଣ୍ଡ ବୁଲେଇ ଦଉଚି।''

ସାରସ ଯୋଡ଼ି ଭାରି ବ୍ୟସ୍ତ ହୋଇ ପଡ଼ିଲେ କୁହାକୁହି ହେଲେ, ''ଏ ଜଳବାୟୁ ତା' ଦେହରେ ଯାଉନାହିଁ।'' କେତେକ ଚଢ଼େଇ ଖବର ପାଇ ସେଠି ଆସି ପହଞ୍ଚିଲେ। ତା' ଭିତରୁ କେତେ ଜଣ ତା'ର ସେବା କରିବାକୁ ଲାଗିଲେ। ଆଉ କେତେଜଣ ଔଷଧ ପାଇଁ ଧାଇଁଲେ। ଆହା ! ସେବା କି ଔଷଧ କିଛି କାମ ଦେଲା ନାହିଁ। ଟିକି ଚଢ଼େଇ ପାଟି ଖୋଲି ବାଜି ଆସିଲା। କହିଲା, ''ଭାଇମାନେ ମୁଁ ଆପଣମାନଙ୍କର

ଋଣ ଶୁଝି ପାରିବିନାହିଁ। ମୋର ଶେଷ ବେଳ ଆସିଲା। ମୁଁ ମରିଯିବି। ମଲା ବେଳେ ଏତିକି ଶାନ୍ତି ଯେ, ମୁଁ ଗୋଟାଏ କଥା ଜାଣିବା ପାଇଁ ଚେଷ୍ଟା କରି ମରୁଛି।'' ତା'ପରେ ତା ପାଟି ଆଁ ହୋଇ ଗଲା। ସବୁ ଶେଷ। ଚଢେଇମାନେ କାନ୍ଦି ଉଠିଲେ। ଟିକି ଚଢେଇ ମଲା ଖବର ସବୁଆଡେ ପ୍ରଚାର ହୋଇଗଲା। ଚଢେଇ-ରାଜା ବି ଏ ଖବର ସଙ୍ଗେ ସଙ୍ଗେ ପାଇଗଲେ। ''ମୁଁ ତାଙ୍କ ମରଶରୀରକୁ ଦେଖିବାକୁ ଯିବି'' ସେ କହିଲେ। ସେ ଏତେ ବୁଢା ହୋଇ ଯାଇଥିଲେ ଯେ, ମୋଟେ ଉଡି ପାରୁ ନଥିଲେ। ତଥାପି ଆସିଲେ। ଟାପୁର ସବୁ ଚଢେଇ ଆଗରୁ ସେଠି ଏକାଠି ହୋଇ ଯାଇଥିଲେ। ରାଜା ମଲା-ଟିକି ଚଢେଇ ପାଖରେ ଠିଆ ହୋଇ ତାଙ୍କର ମୁଣ୍ଡ ନୁଆଁଇ ଦେଲେ ଏବଂ କହିଲେ, ''ମୋର ପ୍ରିୟ ଚଢେଇମାନେ ! ତମେମାନେ ତ ଜାଣ ଚଢେଇ ରାଜା କାହା ଆଗରେ ମୁଣ୍ଡ ନୁଆଁନ୍ତି ନାହିଁ। ଆଜି ମୁଁ ଏପରି କଲି କାହିଁକି ? ମୁଁ ଏ ଟିକି-ଚଢେଇକି ସମ୍ମାନ ଜଣାଇଲି। ସମ୍ମାନ ଜଣାଇବା ମୂଳରେ ଏହି କଥା ରହିଛି। ମୁଁ ତ ବୁଢା ଲୋକ। କୁଆଡକୁ ଯାଇପାରେ ନାହିଁ। କୋରଡରେ ରହି ବହୁତ ଚିନ୍ତା କରିଛି। ମଣିଷ ଏତେ ଆଗେଇ ପାରୁଛି, ଆମେମାନେ କାହିଁକି ପଛୁଆ। ଯେଉଁ ଗୁଣ ମଣିଷକୁ ବଡ କରିଛି ସେ ଗୁଣର ଅଧିକାରୀ ଏ। ସେ ଗୁଣଟି ହେଲା ଆମ ଚାରିପାଖରେ

ଯେଉଁ ସବୁ ଘଟଣା ଘଟୁଛି ସେଗୁଡିକ ପଛରେ ଲୁଚି ରହିଥିବା କାରଣ ଗୁଡିକୁ ଖୋଜିବା ଓ ବୁଝିବା।

ଯେଉଁ ଘଟଣା ଆମ ମନରେ କୌତୁହଳ ସୃଷ୍ଟି କରୁଛି, ସେ ଆମକୁ ସତେ ଯେପରି କହୁଚି "ଖୋଜ, ଏହା ପଛରେ କ'ଣ ସବୁ ଅଛି ଖୋଜ। ଯିଏ ତା' କଥା ବୁଝୁଛି ସିଏ କେବଳ ଆଗଉ ନାହିଁ, ସେ ବିଷୟ ଜଣାଇ ସମସ୍ତଙ୍କର ବହୁ ଉପକାର କରୁଛି। ଜାଣିବା ପାଇଁ ଯା ମନରେ ଜିଦି ଅଛି ସେ ସବୁବେଳେ ବଡ ହୋଇପାରିଛି। ମନରୁ ଉଠୁଥିବା ପ୍ରଶ୍ନ ଓ ତାକୁ ସମାଧାନ କରିବାର ବିପଦକୁ ଖାତିର ନକରି ଆଗେଇବା ଉଚିତ। ଏହିପରି ସେ ଏକ ଦୀର୍ଘ ଭାଷଣ



ଦେଲେ ଓ ଶେଷକୁ ସେ କହିଲେ, "ଆମେ ଏହାଙ୍କର ଆତ୍ମାର ସଦଗତି ପାଇଁ ୨ ମିନିଟ୍ ନିରବ ପ୍ରାର୍ଥନା କରିବା। ତାହାପରେ ଏହାଙ୍କର ଶବକୁ ଏକ ଶୋଭା ଯାତ୍ରାରେ ନେଇ ସମୁଦ୍ର କୂଳରେ ସମାଧି ଦେବା।"

ରାଜା ଯାହା କହିଲେ, ତାହା ହିଁ ହେଲା।

ସମୁଦ୍ର ତଟରେ କବରଟିଏ ତୋଳା ହେଲା। ସେଇ କବର ଉପରେ ଜଣେ ଚଢେଇ-କବିଙ୍କର ଗୀତରୁ ପଦେ ଲେଖା ହେଲା।

"ଜାଣିବା ପାଇଁ କି ଇଚ୍ଛା କରି ଯିଏ
ବୀର ପରି କାମ କରେ
ମରି, ଚିରକାଳ ଅମର ହୋଇ ସେ
ରହିଯାଏ ଧରା ପରେ।"

ଏ ଗୀତ ପଦଟିକୁ ସବୁ ଚଢେଇ ଗାଇ ଗାଇ ଘରକୁ ଫେରିଲେ। ସେଠି କିନ୍ତୁ ରହିଗଲା ସମାଧି ଓ ସମୁଦ୍ର ଢେଉମାନେ ଧରାପରା ହୋଇ ଖାଲି ଏଇ କଥା ପଢ଼ି ଗାଇବାକୁ ଲାଗିଲେ।

ତା' ପରଦିନ ଚଢେଇ ସଭା ବସିଲା। ଏରା ଓ ହଂସରାଳୀ ସତକୁ ସତ ବଛାହେଲେ ସେ ବିଚିତ୍ର ଚଢେଇ ସାଥିରେ ଯିବା ପାଇଁ। କିନ୍ତୁ ବିଚିତ୍ର ଚଢେଇ ଟିକିଏ ଭାବି

କହିଲା, "ଯିବା ଯେ, ଶୀତଋତୁ ତ ଆସିବାକୁ ସଜ ହେଲାଣି। ଆଉ କେଇଦିନ ବାଦେ ସେ ଦେଶରେ ବରଫ ପଡିବ। ସେଠି ଚଳିବା ବଡ କଷ୍ଟ ହେବ। ଆଉ ଦି ମାସ ପରେ ବସନ୍ତ ଋତୁ ଆସିବା ମାତ୍ରେ ଆମେ ଯାତ୍ରା ଆରମ୍ଭ କରିବୁ।"

ରଜା କହିଲେ, "ଠିକ୍ ଠିକ୍। ତାହେଲେ ଆମ ଏଠିକା ଚଢେଇଦଳ ଆଉ କେତେଦିନ ପରେ ଭାରତର ଚିଲିକା ହ୍ରଦକୁ ଯିବେ। ତମେ ତାଙ୍କ ସାଥିରେ ଯାଇପାର। ନୂଆ ଜାଗାଟିଏ ଦେଖିଆସିବ। ଫେରିଲେ ସେଠିକୁ ଯାତ୍ରା ଆରମ୍ଭ କରିବ।

ବିଚିତ୍ର ଚଢେଇଟି ଭାରି ଖୁସୀ ହୋଇଗଲା। ନୂଆ ସାଙ୍ଗ, ନୂଆ ଜାଗା। କେତେ ଖୁସୀ, କେତେ ମଜା।

ସିଏ ଖାଲି ତା' ଥଣ୍ଟରେ ଥଣ୍ଟ ବଜାଇ ନାଚି ନାଚି ବାଜା ବଜାଇବାକୁ ଲାଗିଲା।

ଯେଉଁ ଦେଶାନ୍ତରୀ ପକ୍ଷୀମାନଙ୍କ କଥା କୁହାଗଲା ସେମାନଙ୍କ ବିଷୟରେ ଆଉ ଟିକିଏ ସୂଚନା ଦେବା ଉଚିତ।

ଉପରେ ଆକାଶ ତଳେ ମାଟି। ମଝିରେ ପବନ। ସେଇ ପବନରେ ମାଟିର ଗୋଡ ଦେଇ ଆକାଶକୁ ମଥା ଟେକିଥିବା ଗଛମାନେ ଝୁଲୁଥାନ୍ତି ଆନନ୍ଦରେ। ପବନ ଭିତରର

ସେଇ ଗଛଟିମାନଙ୍କୁ ନେଇ ଚଢ଼େଇଙ୍କ ରାଇଜ। ଚଢ଼େଇମାନେ କି ହସ ଖୁସୀର ଜୀବ। ମାଟିରେ ଚରନ୍ତି, ଆକାଶରେ ବୁଲନ୍ତି। ପବନକୁ ଗୀତରେ ଭରନ୍ତି।

ମଣିଷମାନଙ୍କ ଭିତରେ ବିଭିନ୍ନ ପ୍ରକାର ମଣିଷ ଥିଲା ଭଳି ସେମାନେ ମଧ୍ୟ ନାନା ପ୍ରକାରର ଅଛନ୍ତି। କେତେକ ଗୋଟାଏ ଜାଗାରେ ବସା କରି ରହନ୍ତି। ଆଉ କେତେକ ଦେଶ ଭିତରେ ବୁଲନ୍ତି। ଆଉ କେତେକ ସାତ ଦରିଆ ତେରନଈ ପାର ହୋଇ ବିଦେଶରୁ ଆସନ୍ତି ପୁଣି ଫେରି ଯାଆନ୍ତି। ସେମାନଙ୍କୁ ଦେଶାନ୍ତରୀ ପକ୍ଷୀ କୁହାଯାଏ। ଶୀତଋତୁ ଆରମ୍ଭ ହେବା ମାତ୍ରେ ସେମାନେ ପଳେଇ ଆସନ୍ତି ଆମର ଚିଲିକା ହ୍ରଦକୁ। ସେମାନେ ଏକୁଟିଆ ଆସନ୍ତିନି। ଆସନ୍ତି



ଦଳ ଦଳ ହୋଇ। ସେମାନଙ୍କର ଦଳପତି ଥାଆନ୍ତି। ଦଳପତି ମାନେ ଦଳଟିକୁ ଠିକ୍ ବାଟରେ ଆଣନ୍ତି। ଆସିଲା ବେଳେ ଆକାଶରେ ସେମାନେ ଦିଶନ୍ତି ଇଂରାଜୀ ଅକ୍ଷର 'ଭି' ଭଳି।

ଦିନ ଦିନ ଧରି ସେମାନେ ସମୁଦ୍ର ଉପର ଦେଇ ଉଡି ଆସନ୍ତି। ନଖାଇ ନପିଇ ମଧ୍ୟ ସେମାନଙ୍କର କିଛି ଅସୁବିଧା ନାହିଁ। କାରଣ ପ୍ରକୃତି ତାଙ୍କୁ ସେଇପରି ଗଢିଛନ୍ତି। ଆକାଶରେ ଦିନରେ ସୂର୍ଯ୍ୟ, ରାତିରେ ତାରାମାନଙ୍କୁ ଲକ୍ଷ୍ୟ କରି ଦିଗନିର୍ଣ୍ଣୟ କରି ସେମାନେ ଉଡି ଆସନ୍ତି। ସେମାନଙ୍କର ଗତିପଥ କେବେ ଭୁଲ୍ ହୁଏନାହିଁ।

ସେମାନେ ଆସନ୍ତି ଶୀତଋତୁ ଆରମ୍ଭରେ ପୁଣି ଫେରି ଯାଆନ୍ତି ଶେଷରେ। ସେମାନଙ୍କର ପ୍ରଧାନ ଶତ୍ରୁ ଶିକାରୀ। ଶିକାରୀମାନେ କି ନିଷ୍ଠୁର ସତେ। ପକ୍ଷୀମାନେ ତ ବଡ ସୁନ୍ଦର। ସେମାନଙ୍କର ଗତି ବିଧି ଗ୍ଭଲି ଚଳଣ ମଧ୍ୟ ଭାରି ସୁନ୍ଦର। ତାଙ୍କୁ ଲକ୍ଷ୍ୟ କଲେ ଭାରି ମଜା ଲାଗେ।

ଶରତ୍ ଋତୁ ଶେଷ ହେଲା। କେତେକ ଗଛର ପତ୍ର ସବୁ ହଳଦିଆ ଦେଖା ଦେଲେଣି। ବୁଢା ହୋଇ ଆସୁଥିବା ମଣିଷର କଳା ମୁଣ୍ଡର କେତୋଟି ପାଚିଲା ବାଳ ଭଳି। ଶୀତଋତୁ ଆଉ ବା କେତେ ଦିନ। ଟାପୁ ଚଢେଇମାନଙ୍କ

ଭିତରେ ଗ୍ୱଲିଲା ଯୋଗାଡଯନ୍ତ୍ର। ଛୁଆ ଛୁଆ ଚଢ଼େଇମାନେ ଭାରି ହକ ହକ ହେଲେଣି। ବୟସ୍କା ଚଢ଼େଇ ମାନଙ୍କର ନାନା ଚିନ୍ତା। ସେମାନେ ଏଠୁଁ ଚିଲିକା ଉଡ଼ିଯିବେ ଦି' ମାସ ପାଇଁ। ବାଟରେ କେତେ ଦୁର୍ଘଟଣା। ଶିକାରୀଙ୍କ କଥା ଭାବିଲେ ସେମାନଙ୍କର ଆଖିରେ ଲୁହ ଭରି ଯାଉଥାଏ। କେତେ ଆନନ୍ଦ ଉତ୍ସବରେ ସେମାନେ ଦୁଃଖ ଆଣି ଭରି ଦିଅନ୍ତି। ପୁଣି ସେମାନେ ଭାବୁଥା'ନ୍ତି ଚିଲିକାର ନଳବଣ କେବଳ ଗୋଟିଏ ମାତ୍ର ନିରାପଦ ଜାଗା। ଶିଘ୍ର ନଗଲେ ସେଠି ଯଦି ଆଗରୁ ଅନ୍ୟ ଦେଶର ଚଢ଼େଇମାନେ ଜାଗା ଦଖଲ କରି ଯାଇଥିବେ।

ଟାପୁର ଚଢ଼େଇ ଦଳ ଦିନେ ପାହାନ୍ତିଆ ବାହାରିଲେ। ସେମାନଙ୍କର ପହିଲି କାମ ଥାଏ ସମୁଦ୍ର ସେ ପାଖରେ ପହଞ୍ଚିବା ମାତ୍ରେ କାହିଁକି ଗଛଟିକୁ ଖୋଜି ତାକୁ ଟିକି ଚଢ଼େଇ କଥା କହିବା।

ତେଣେ କାହିଁକି ଗଛଟି ଟିକି ଚଢ଼େଇକି ଗ୍ୱହିଁ ରହିଥାଏ। ତା' ମନରେ ଢୁକିଥାଏ ଆଉ ଗୋଟାଏ ପ୍ରଶ୍ନ। ଜଣେ ଜଣେ ଏମିତି ଠକନ୍ତି କାହିଁକି ? ଟିକି ଚଢ଼େଇଟା ତ ମତେ ମନା କରି ପାରି ଥା'ନ୍ତା। ବୁଝି କହିବ ବୋଲି କହି ଖସି ପଳାଇଲା କାହିଁକି ?''

ଦିନେ ଗୋଟିଏ ନୁହେଁ ଦଳେ ଟିକି ଟିକି ଚଢ଼େଇ

ସେ କାହିଁକି ଗଛ ପାଖରେ ଆସି ପହଞ୍ଚିଲେ, ପଚ୍ଚାରିଲେ, "ଆମ ବାପାକୁ ଦେଖିଛ ?" ସେମାନେ ପୁଣି କହିଲେ "ଆମକୁ ଦେଖୁଛ ତ ? ଆମ ବାପା ଠିକ୍ ଆମରି ପରି ଥିଲେ। ସେ ଭାରି ଭଲ। ଦୀର୍ଘ ୨ ମାସ ହେଲା ଆମକୁ ଛାଡି କୁଆଡେ ଚାଲି ଯାଇଛନ୍ତି। ଆମେ ତାଙ୍କୁ ଖୋଜୁଛୁ ତାଙ୍କୁ ନପାଇ ଆମେମାନେ ବଡ ଦୁଃଖରେ ଅଛୁ।"

ଗଛଟି ସବୁ ବୁଝିଗଲା। ସେମାନଙ୍କର ମନର ଦୁଃଖକୁ କଳି ନେଲା। ସେମାନଙ୍କୁ ଡାକି ଅତି କଅଁଳ ସ୍ୱରରେ ସବୁ କଥା କହିଲା "ତମ ବାପା ଯାଇଚି ତ ଯାଇଚି..."

ସେ ସେମାନଙ୍କୁ ଅନୁରୋଧ କଲା ଏଇଠି କିଛିଦିନ ରହି ତାଙ୍କ ବାପାଙ୍କୁ ସେ ଯାଇଥିବା ଦିଗରେ ଯାଇଁ ସେମାନେ ଖୋଜନ୍ତୁ। କିଛି ଖବର ନିଶ୍ଚୟ ମିଳିଯିବ।



ଦିନେ ବଡ଼ି ଭୋ'ରୁ କାହିଁକି ଗଛ ଦେଖିଲା ତା ପାଖରେ କେତୋଟି ଚଢ଼େଇ ପର ପଡ଼ିଛି। ସେ ନିରେଖି ଚିହ୍ନିଲା ଇଏତ ଏଠିକା ଚଢ଼େଇଙ୍କର ନୁହେଁ। ମନକୁ ମନ କହିଲା "ଓଃ, ତେବେ ଋତୁ କୁଣିଆ ଆସିଗଲେ ପରା !" ସେ ଦେଶାନ୍ତରୀ ଚଢ଼େଇମାନଙ୍କୁ ଋତୁ କୁଣିଆ ବୋଲି ଡାକିଥାଏ। ସେ ପୁଣି ଭାବିଲା ଏଇ କେତେଦିନ ତଳେ ଆକାଶର ଶେଷ ବାଦଲ ଖଣ୍ଡ ଭାସି ଚ୍ୱାଲିଗଲା। ମୌସୁମୀ ବିଦାୟ ନେଲା। ଏଇ ଚଢ଼େଇମାନେ ବାଟରେ କେଉଁଠି ନା କେଉଁଠି ତାକୁ ଭେଟିଥିବେ। ସତକୁ ସତ ତା ପରଦିନ ରାତି ଘଡ଼ିକକୁ ବହୁ ସଂଖ୍ୟାରେ ଚଢ଼େଇ ଆକାଶର ଗୋଟାଏ କଣରୁ ଫୁଲମାଳ ପରି ଉଡ଼ି ଆସିଲେ। ତା ପାଖରେ ସେମାନେ ଓହ୍ଲାଇଲେ। ଏତେ ସଂଖ୍ୟାରେ ଓହ୍ଲାଇଲେ ଯେ



ବସିବାକୁ ଜାଗା ନପାଇ ତଳେ ମାଟି ଉପରେ ବସିଗଲେ। କାହିଁକି ଗଛ ପଗ୍ଚରିଲା, "ହେ ଦୂରଦେଶୀ ଭାଇମାନେ, ଏଠି କାହିଁକି ? ମୋର ଜାଗା କାହିଁ ତମମାନଙ୍କୁ ବସାଇବା ପାଇଁ ? କ'ଣ କିଛି ଆଗକୁ ଦୁର୍ଘଟଣା ଘଟିବ ବୋଲି ଜାଣି ପାରୁଚ କି ?"

ସେମାନେ କହିଲେ, "ନାଇଁ ଆମେ ତମକୁ ଖୋଜି ଖୋଜି ଆସିଚୁ। କଥାଟିଏ କହିବୁ।" ତା'ପରେ ସେମାନେ ଗୋଟି ଗୋଟି କରି ସବୁ ଗପିଗଲେ। ଟିକି ଚଢ଼େଇ ମରିବା କଥା ଶୁଣି ଗଛଟି ପୂରା ଚୁପ୍ ହୋଇଗଲା। ସେତେବେଳେ ପବନ ସହିତ ତାଳ ଦେଇ ତା ସବା ଅଗଟିର ପତ୍ରର ଅଙ୍ଗଟି ବି ସାମାନ୍ୟ ଟିକିଏ ହଲିଲା ନାହିଁ। ଟପ୍ ଟପ୍ କେଇ ଟୋପା ପାଣି ତଳେ ଖସି ପଡ଼ିଲା। ତଳେ ବସିଥିବା ଚଢ଼େଇମାନେ ଉପରକୁ ଗ୍ଚହିଁଲେ ଏତେ କାକର ତ ଆଜି ପଡ଼ିନାଇଁ....

ଟିକି ଚଢ଼େଇ ପିଲାମାନେ ବି କାନ୍ଦି ପକାଇଲେ। କାହିଁକି ଗଛ ସେ ଚଢ଼େଇମାନଙ୍କୁ ସେମାନଙ୍କର ପରିଚୟ କରାଇ ଦେଲା। ଆସିଥିବା ସେଇ ଚଢ଼େଇମାନେ ଗଛ ଓ ଚଢ଼େଇ ପିଲାମାନଙ୍କୁ ବୁଝାଇଲେ। ସେମାନେ ତାଙ୍କ ସେଇ ବିଚିତ୍ର ଚଢ଼େଇ ଓ ରାଜା କହିଥିବା କଥା ସବୁ ଗୋଟି ଗୋଟି କରି କହିଗଲେ। ସେମାନେ ସମାଧି ଉପରେ ଲେଖା

ଯାଇଥିବା ଗୀତଟିକୁ ଏକ ସ୍ୱରରେ ଗାଇଲେ। କହିଲେ ଏଇ ଗୀତଟିକୁ ସମୁଦ୍ର ଢେଉମାନେ କିପରି ସବୁବେଳେ ବଡ ପାଟିରେ ପଢୁଛନ୍ତି। ସେଇ ଢେଉମାନେ ଯଦି ଏ କୂଳକୁ ଫେରନ୍ତେ ତେବେ ତମେମାନେ ସବୁ ଜାଣି ପାରନ୍ତ। ଏହାପରେ ସବୁକଥା ବୁଝେଇ ଆସିଥିବା ଚଢେଇମାନେ ଚିଲିକା ଆଡକୁ ମୁହାଁଇଲେ।

ତା' ପରଦିନ ସକାଳେ ଟିକି ଚଢେଇ ଛୁଆମାନେ ବାହାରିଲେ ଯିବାକୁ। କାହିଁକି ଗଛ କହିଲା "କୁଆଡେ ଯିବରେ ମତେ ଛାଡି। ଯାଅ ନାଇଁ... ମୋର ପାଖରେ ରୁହ। ମୁଁ ତମର ସୁଖ ଦୁଃଖରେ ଭାଗ ନେବାକୁ ଚାହେଁ। ତମମାନଙ୍କ ପ୍ରତି ମୋର କିଛି ଦାୟିତ୍ୱ ରହିଚି ବୋଲି ମୁଁ ଭାବୁଛି।"

ସେମାନେ କହିଲେ, "ଆମେ କେମିତି ରହିବୁ? ତମର ଡାଳ କାହିଁ? ଆମେ ବସା ବାନ୍ଧିବୁ କୋଉଠି? କେମିତି?" ଗଛଟି ଟିକିଏ ଭାବିଲା ତା'ପରେ ଗମ୍ଭୀର ସ୍ୱରରେ କହିଲା, "କ'ଣ ହେଲା? ତମ ବାପା ଏତେ କାମ କରିବା ପାଇଁ ଆଗେଇ ଯାଇପାରେ, ତା ପିଲା ତମେମାନେ କହୁଚ..." ଟିକିଏ ରହି ପୁଣି କହିଲା "ବୁଦ୍ଧି ଖଟା... ।"

ସେମାନେ ଭାବିହେଲେ ସେମାନଙ୍କ ଭିତରୁ ଜଣେ କାହିଁକି ଗଛର ପତ୍ରଟିରେ ଥଣ୍ଟ ଘଷିବାକୁ ଲାଗିଲା। ଘଷୁ

ଘଷୁ ପତ୍ରରୁ ଖିଅଟିଏ ଚିରିବାକୁ ଲାଗିଲା। କାହିଁକି ଗଛ କହିଲା, "ବାଃ ବାଃ... ବଢ଼ିଆ ଲାଗୁଚି, ବୋକ ଦେଲା ପରି ଲାଗୁଛି... ।" ତା'ପରେ ସମସ୍ତେ ସେଇଆ କଲେ। ପଗ୍ଭରିଲେ "ମଉସା କଷ୍ଟ ହଉଚି।"

କାହିଁକି ଗଛ କହିଲା, "ନାଇଁରେ ମୋଟେ ନୁହେଁ।"

ତା'ପରେ ସେମାନେ ପାଖ ଆଖୁ କିଆରିକି ଉଡିଗଲେ ସେଠୁଁ ଧରି ଆସିଲେ ଥଣ୍ଟରେ ଖିଅଟିଏ ମାନ।

ତାପରେ 'କାହିଁକି'ର ଡାଳରେ ଖାଲି ଲାଗି ଗଲା କାମ। ଦିନେ ସକାଳ ସୂର୍ଯ୍ୟ ଦେଖିଲା ବାହୁଙ୍ଗାମାନଙ୍କରୁ ଝୁଲୁଚି ସୁନ୍ଦର ସୁନ୍ଦର ବସାଟି ମାନ। ସକାଳର ପବନ ଭାରି ଖୁସୀ।



ସେଗୁଡିକୁ ଟିକେ ଟିକେ ଛୁଇଁ ଦେଇ ଟପିଗଲା ।

ଉଦ୍ୟମ ବଳରେ ନୂଆ କାର୍ଯ୍ୟଟିଏ ହେଲେ ତାକୁ କିଏ ଭଲ ନପାଏ ? ନାଁ, ସମସ୍ତେ କ'ଣ ଭଲ ପାଆନ୍ତି ? ଏ ଦୁନିଆଁରେ ବହୁ ନିନ୍ଦୁକ ଥାଆନ୍ତି । ସେଇ ଭଳି ନିନ୍ଦୁକ ଥିଲା ଡାମରା କାଉ । ସେ ଜହ୍ନ ଉଁଥିବା ତାଳ ବଣିଆରେ ରହେ । ସେଇବାଟେ ଉଡି ଯାଉଥିଲା । ବଣିଟିଏ ତା ପାଖେ ପାଖେ ଉଡୁ ଉଡୁ ପଚ୍ଚରିଲା, "ଦାଦା, ଏସବୁ କ'ଣ ? ଏମାନେ ସବୁ କିଏ ? କି ସୁନ୍ଦର ଦିଶୁଚି !" ଡମରା କହିଲା, "ଆରେ ତୁ ଜାଣିନୁ । ମୁଁ ଭଲ ଭାବରେ ଜାଣିଚି । ଏମାନଙ୍କର ବାପାକୁ ବି ଜାଣିଚି । ଏମାନଙ୍କର ବାପା ଥିଲା ଜହ୍ନଧରା ବାଇଆ । ବିଚରା ମଲା । ଏମାନେ ତାଆରି ପିଲା । ବାଇଆ ।"

କଥା ତ କାନରୁ କାନ । ଏମାନେ ବାଇଆ ଚଢେଇ ବୋଲି ସମସ୍ତଙ୍କ ପାଖରେ ଏବେ ଜଣା ଶୁଣା ।

